No. O-24.

# The Economic Aspect of the Boycott of Foreign Cloth.

*(Bihar and Orissa Publicity Bureau.)*

---

## ଅର୍ଥନୀତି ପକ୍ଷରୁ ବିଦେଶୀ ଲୁଗା ବୟ୍‌କଟ୍‌ର ବିଚାର ।

ବିହାର ଓ ଓଡ଼ିଶା ପବ୍ଲିସିଟି ବ୍ୟୁରୋ ।

---

ସମସ୍ତ ଭାରତରେ ଏକାବେଳେକେ ବିଦେଶୀ ଲୁଗାର ବ୍ୟବହାର ବନ୍ଦ କରିଦେବା ନିମନ୍ତେ ଯେ ପ୍ରସ୍ତାବ କରାଯାଉଅଛି, ସେ ବିଷୟରେ ସବୁ ଶ୍ରେଣୀର ଲୋକଙ୍କର ଭାବିବାର ଦରକାର । ସର୍ବପ୍ରଥମ ପ୍ରଶ୍ନ ଯାହା ସ୍ୱଭାବତଃ ମନରେ ଉଠେ ତାହା ଏହି, ଏପରି ବୟ୍‌କଟ୍‌ର ପରିଣାମ କଅଣ ହେବ ? ଭାରତର ସମସ୍ତ ଲୋକଙ୍କ ସକାଶେ କି ଯଥେଷ୍ଟ ଲୁଗା ଯୋଗାଇ ଦିଆଯାଇପାରିବ, ଏହି ବୟ୍‌କଟ୍‌ର ଫଳରେ ଜିନିଷପତ୍ରର ଦରର ଅବସ୍ଥା କିପରି ରହିବ । ୧୯୦୩ ରୁ ୧୯୧୩-୧୪ ଓ ୧୯୧୩-୧୪ ରୁ ୧୯୨୦-୨୧ ପର୍ଯ୍ୟନ୍ତ ଭାରତରେ କେତେ କୋଟି ଗଜ ତୁଲାର ଲୁଗା ଖରଚ ହୋଇଅଛି ତାହାର ହିସାବ ତଳେ ଦିଆଗଲା । ଏ ତାଲିକାରେ ନିଜ ବା ଖାଣ୍ଟି ଆମଦାନି, ଭାରତବର୍ଷର କଳମାନଙ୍କରେ ତିଆରି ହୋଇଥିବା ଲୁଗା ଓ ହାତବୁଣା ଲୁଗାର ହିସାବ ଦିଆହୋଇଅଛି । ଶେଷ ହିସାବରେ ଭାରତରେ କଟା ହୋଇଥିବା ଅବା ବିଦେଶରୁ ରପ୍ତାନୀ ହୋଇଥିବା ପ୍ରତ୍ୟେକ ପାଉଣ୍ଡ ସୂତାକୁ ଗ ୪½ ଜ ଲୁଗା ହିସାବରେ ଧରାଯାଇଅଛି ।

ଭାରତରେ କେତେ କୋଟି ଗଜ ଲୁଗା ଖରଚ ହୋଇଛି ତାହାରି ହିସାବ :—

| | ୧୯୧୩-୧୪ ପର୍ଯ୍ୟନ୍ତ ବର୍ଷର (୦୦୦,୦୦୦ ବାଦ ଦିଆହୋଇଛି) । | ୧୯୨୦-୨୧ ପର୍ଯ୍ୟନ୍ତ ବର୍ଷର (୦୦୦,୦୦୦ ବାଦ ଦିଆହୋଇଛି) । |
|---|---|---|
| କନା ବା ଖଣ୍ଡି ଆମଦାନୀ | ୨୩୯୭ ଗଜ | ୧୩୨୪ ଗଜ |
| ଖଣ୍ଡି ବା କନା କଲ ତିଆରି | ୧୦୧୪ „ | ୧୪୮୨ „ |
| ହାତବୁଣା | ୧୦୫୪ „ | ୯୨୭ „ |
| ଗୋଟ ମୋଟ ଖରଚ | ୪୪୬୪ ଗଜ | ୩୭୩୨ ଗଜ |

ଏହି ଉପରୋକ୍ତ ତାଲିକାରୁ ଆମ୍ଭେମାନେ ଅନେକଗୁଡ଼ାଏ ବିଷୟ ବୁଝି ପାରୁଛୁଁ :—ଯୁଦ୍ଧ ପୂର୍ବରୁ ପ୍ରାୟ ୨୪୦୦ କୋଟି ଗଜ ଲୁଗା ଅର୍ଥାତ୍ ଭାରତ-ବର୍ଷରେ ଯେତେ ଲୁଗା ଖରଚ ହୁଏ ତାହାର ଅଧେରୁ ବେଶୀ ଲୁଗା ବିଦେଶରୁ ଉତ୍ପାନୀ ହେଉଥିଲା । ଯୁଦ୍ଧ ସମୟରେ ଏବଂ ଯୁଦ୍ଧ ଉତ୍ତାରେ ଏହି ଆମଦାନୀ ଅଧେ କମିଯାଇଛି ଏବଂ ବର୍ତ୍ତମାନ ଏହି ଆମଦାନୀ ଲୁଗାର ଅନୁପାତ ପ୍ରାୟ ଏକ ତୃତୀୟାଂଶ । ଖରଚ ୪୪୬୪ କୋଟି ଗଜରୁ ୩୭୩୨ କୋଟି ଗଜ ପର୍ଯ୍ୟନ୍ତ ଓହ୍ଲାଇ ଆସିଛି, ଅର୍ଥାତ୍ ୬ ଭାଗରୁ ଭାଗେ କମିଯାଇଛି । ଯୁଦ୍ଧ ପୂର୍ବରେ ଲୋକ-ମାନେ ଯେତେ ଖରଚ କରୁଥିଲେ ଗତ ବର୍ଷ ମଧ୍ୟରେ ଖରଚ ତା ଠାରୁଁ ଅନେକ କମିଯାଇଛି, ଏଥିରୁ ଏହା ଜଣାଯାଉଛି ଯେ ଲୋକ ଅଧିକ ଲୁଗାର ଦରକାର ଥିଲେ କୌଣସି କାରଣରୁ ସେମାନେ ସେମାନଙ୍କର ପ୍ରୟୋଜନାନୁସାରେ ପାଉନାହାନ୍ତି । ଯେଉଁମାନେ ଭାରତବର୍ଷର ବିଶେଷରେ ବଜାରର ଅବସ୍ଥା ଜାଣନ୍ତି ସେମାନେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ଯେ ଏଠାକାର ଲୋକେ ଯୁଦ୍ଧ ପୂର୍ବରେ ଯେପରି ବେଶୀ ଲୁଗାପଟା ପିନ୍ଧୁଥିଲେ ବର୍ତ୍ତମାନ ସେପରି ପିନ୍ଧୁ ନାହାନ୍ତି, ତାହାର କାରଣ ଲୁଗାର ଦର ବର୍ତ୍ତମାନ ଖୁବ ଚଢ଼ିଛି, ଲୋକେ ଏତେ ଦାମ ଦେଇ ବେଶୀ ଲୁଗା କିଣି ପାରୁନାହାନ୍ତି । ଅତଏବ ଆମ ମୋଟା

ବୃଦ୍ଧିରେ ଅମ୍ଭେମାନେ ଦେଖୁଛୁ ଯେ ଲୁଗାର ଆୟୋଜନ ଓ ଆମଦାନୀ ଯେଉଁଥିରେ କମିଯିବ ଏପ୍ରକାର କାର୍ଯ୍ୟ ନ କରି ଦେଶହିତୈଷିମାନଙ୍କର ଉଚିତ କିପରି ଲୁଗାର ପରିମାଣ ବଢ଼ିବ ତାହାରି ଉପାୟ କରିବା ।

ଯଦି ବୟକଟ୍ କରି ସବୁ ବିଦେଶୀ ଲୁଗାର ଆମଦାନୀ ବନ୍ଦ କରାଯାଏ ତାହାହେଲେ ଫଳ କଅଣ ହେବ ଆସ ଅମ୍ଭେମାନେ ଦେଖୁଁ । ଯଦି ହଠାତ୍ ଭାରତବର୍ଷରେ କଳରେ ତିଆରି ଓ ହାତରେ ତିଆରି ଲୁଗା ବେଶୀ ପରିମାଣରେ ପ୍ରସ୍ତୁତ ନ ହୁଏ ତାହାହେଲେ ଭାରତବାସୀମାନେ ଯେଉଁ ପରିମାଣର ଲୁଗା ବ୍ୟବହାର କରନ୍ତି ସେଥିରୁ କମିଆସି ଲୁଗାର ପରିମାଣ ୨୪୦୮ କୋଟି ଗଜରେ ପହଞ୍ଚିବ । ହଠାତ୍ ଏତେ ପରିମାଣର ଲୁଗା ଭାରତବର୍ଷରେ ପ୍ରସ୍ତୁତ ହୋଇପାରିବ କି ନାହିଁ ସେ ବିଷୟ ଅମ୍ଭେମାନେ ପଛେ ବୁଝିବାକୁ ଚେଷ୍ଟା କରିବା । କିନ୍ତୁ ଯଦି ଧରିନେଉଁ ଯେ ଏତେ ଲୁଗା ହଠାତ୍ ଏଠି ପ୍ରସ୍ତୁତ ହୋଇପାରିବ ନାହିଁ ତାହାହେଲେ ଫଳରେ ଏହା ହେବ ଯେ ଯେଉଁଠି ୧୯୧୩-୧୪ ରେ ଲୋକ ପିଛା ୧୪ ଗଜ ଲୁଗା ପଡୁଥିଲା ଏବଂ ୧୯୨୦-୨୧ ରେ ୧୧½ ଗଜ ପଡୁଥିଲା ସେଠି ଏବର୍ଷ ୭¼ ଗଜ ପଡିବ, ଅର୍ଥାତ୍ ୧୯୧୩-୧୪ ରେ ଯାହାଥିଲା ତାର ଅଧା ; ଜଣକ ସକାଶେ ଖଣ୍ଡେ ଧୋତି କରିବାକୁ ମଧ୍ୟ ଏ ଅଣ୍ଟିବ ନାହିଁ ।

ଏପରି କମିଗଲେ ଫଳରେ କଣ ହେବ ସେ କଥା ବିଚାର କରିବା ପୂର୍ବରୁ ଆସ ଭାରତବର୍ଷରେ ଲୁଗା ଏତେ ପରିମାଣରେ ପ୍ରସ୍ତୁତ କରିବାର କି ସମ୍ଭାବନା ଅଛି ତାହା ଦେଖୁଁ । ସର୍ବପ୍ରଥମରେ ଗୋଟିଏ ବିଷୟ ଅମ୍ଭମାନଙ୍କର ନଜରରେ ପଡ଼େ ; ତାହା ଏହି :— ୧୯୧୩-୧୪ ଲଗାଏତ ପାଞ୍ଚ ବର୍ଷ ମଧ୍ୟରେ ବର୍ଷକୁ ୨୦୬୮ କୋଟି ଗଜ ଲୁଗା ଭାରତବର୍ଷରେ କଳ ଓ ହାତରେ ବୁଣା ହୋଇଥିଲା, କିନ୍ତୁ ୧୯୨୦-୨୧ ସାଲ ପର୍ଯ୍ୟନ୍ତ ଦେଖାଗଲା ଯେ କେବଳ ତାହା ସ୍ଥାନରେ ୨୪୦୮ କୋଟି ଗଜ ପ୍ରସ୍ତୁତ ହୋଇଛି । ଏହି ଯେ ଅତି ସାମାନ୍ୟ ୨୦% ବୃଦ୍ଧି ପାଇଲା ତାହା ୧୯୧୩-୧୪ ଅପେକ୍ଷା ଯେତେବେଳେ ଲୁଗାର

ଦର ତିନି ଗୁଣ ବଢ଼ିଥିଲା । ଦର ଏପ୍ରକାର ବଢ଼ିଥିବାରୁ ନିଶ୍ଚୟ ଲାଭ କରିବା ସକାଶେ କଳରେ ଓ ହାତରେ ଲୋକେ ଯଥାସାଧ୍ୟ ଲୁଗା ବୁଣିବାକୁ ଚେଷ୍ଟା କରିଥିବେ ଏବଂ ଏକଥା ସତ୍ୟ ଯେ କଳରେ ଯେପରି ବେଶୀ ଲୁଗା ପ୍ରସ୍ତୁତ ହୁଏ ତାହାପାଇଁ ଶେଷଅଡ଼କୁ କାରଖାନାର ଅଧିକାରୀମାନେ ଯଥେଷ୍ଟ ଚେଷ୍ଟା କରିଥିଲେ । ବର୍ତ୍ତମାନ ପର୍ଯ୍ୟନ୍ତ ସେମାନେ ନୂଆ କଳ ଆଣିପାରି-ନାହାନ୍ତି ସେଥିପାଇଁ ବିଦେଶୀ ଲୁଗାର ଆମଦାନୀ ଏକାବେଳକେ ବନ୍ଦ ହୋଇଗଲେ ସେହି ପରିମାଣର ଲୁଗା ଏମାନଙ୍କ ପକ୍ଷରେ ଯୋଗାଇବା ଅସମ୍ଭବ ହେବ । ଅତଏବ ତନ୍ତରେ ବୁଣି ଏତେ ଲୁଗା ଯୋଗାଇବାକୁ ହେବ ଲୋକମାନଙ୍କୁ କୁହାହେଉଛି ଯେ ଯଦି ସମସ୍ତେ ସେମାନଙ୍କର ସମୟର କିଛି ଅଂଶ ସୂତା କାଟିବା ଓ ଲୁଗା ବୁଣିବାରେ କ୍ଷେପଣ କରନ୍ତି ତାହାହେଲେ ଏ ଅଭାବ ପୂରଣ କରାଯାଇପାରିବ । ଅବଶ୍ୟ ଯଦି କୋଟି ୨ ଲୋକ ସ୍ୱାର୍ଥତ୍ୟାଗ କରନ୍ତି ତାହାହେଲେ ବର୍ଷେ ଦୁଇ ବର୍ଷ ମଧ୍ୟରେ ଏ ଦେଶରେ ଯେଉଁ କପା ଜାତହୁଏ ତହିଁରୁ ଜାପାନପ୍ରଭୃତି ଦେଶକୁ କିଛି ନ ପଠାଇ ଅତ୍ୟନ୍ତ ମୋଟା ଲୁଗା ସମସ୍ତଙ୍କୁ ଯୋଗାଇ ପାରନ୍ତି । କିନ୍ତୁ ଯେଉଁ ରେଟରେ କଳରେ ପ୍ରସ୍ତୁତ ହୁଏ ସେହି ରେଟରେ ତନ୍ତ ଲୁଗା ତିଆର ହୋଇପାରିବ ନାହିଁ, କି କଳ ପ୍ରସ୍ତୁତ ଲୁଗା ଯେତେ ମଜବୁତ୍ ହେବ ଏ ତେତେ ମଜବୁତ୍ ହେବ ନାହିଁ । ଏହି କ୍ଷୁଦ୍ର ପୁସ୍ତିକାରେ କଳ ପ୍ରସ୍ତୁତ ସୂତା ଓ ହାତ କଟା ସୂତାର ତୁଳନା କରି କିଏ ଭଲ ତାହା ପ୍ରମାଣ କରିବାର ଜାଗା ନାହିଁ । ହାତରେ ସରୁ ସୂତା କାଟିବାକୁ ବେଶୀ ସମୟ ଲାଗିବ, ସେଥିପାଇଁ ଖର୍ଚ୍ଚ ମଧ୍ୟ ପଡ଼ିବ, ଚଞ୍ଚଳ ୨ ସୂତା କାଟିଲେ ସୂତା ମୋଟା ସରୁ ହୋଇଯିବ ଏବଂ ବହନ୍ତ୍ରରେ କଳକଟା ସୂତାପରି ହେବ ନାହିଁ । ସେଥିପାଇଁ ଯଦିବା ଏ ପ୍ରକାର ସୂତା 'ପଡ଼ିଣ' ପାଇଁ ଉପଯୁକ୍ତ ହୋଇପାରେ ଟଣା ଦେବାପାଇଁ ହେଲେ ସୁବିଧାଜନକ ହେବ ନାହିଁ ତେଣୁକରି ଲୁଗାର ଦାମ ବଢ଼ିଯିବ । ଏହି ହାତ ବୁଣା ଲୁଗା କଳର ଟଣା ସୂତାଦେଇ କଲେ ମଧ୍ୟ କଳରେ ପ୍ରସ୍ତୁତ ହୋଇଥିବା ଲୁଗାପରି ବହନ୍ତ୍ରରେ ଯିବନାହିଁ । ଯଦିବା କୋଟି ୨ ଲୋକ ସ୍ୱାର୍ଥଶୂନ୍ୟ ହୋଇ ମୋଟା ବାଙ୍କ ଲୁଗା ତିଆରି କରିବାରେ ସାହାଯ୍ୟ କରନ୍ତି ଏବଂ ୧୯୨୦-୨୧ରେ

ଯେତେ ଲୁଗା ଖରଚ ହୋଇଛି ସେହି ପରିମାଣ ଲୁଗା ତୟାରି କରନ୍ତୁ, ତାହାହେଲେ ବର୍ତ୍ତମାନ ବେଶୀ ଦାମ ଦେଇ ଯେଉଁ ଲୁଗା କଣୁଛୁଁ ସେସବୁ ଲୁଗା ବହନ୍ତରେ ତାଠୁଁ ହୀନତର ହେବ ।

ଗୋଟିଏ ବିଷୟ କିନ୍ତୁ ଅତି ସ୍ପଷ୍ଟରୂପେ ବୁଝାପଡୁଛି ତାହା ଏହି ବର୍ତ୍ତମାନ ହାତବୁଣା ଲୁଗା ଯେଉଁ ପରିମାଣରେ ପ୍ରସ୍ତୁତ ହେଉଛି ତାହା ନଗଣ୍ୟ ଏବଂ ଯଦି ଗାନ୍ଧିଙ୍କ କଥା ଅନୁସାରେ ଏକାବେଳେକେ ଲୋକେ ବିଦେଶୀ ଲୁଗା ବ୍ୟବହାର କରିବାକୁ ବନ୍ଦ କରିଦିଅନ୍ତି ତାହାହେଲେ ଲୁଗା ଦୁର୍ଭିକ୍ଷ ପଡ଼ିଯିବ । ବିହାର ଓ ଓଡ଼ିଶାର ଲୋକ ଯୁଦ୍ଧ ସମୟର ଅନୁଭବ ପାସୋରି ନାହାନ୍ତି ଅତଏବ ଏହାର ଫଳ କଣ ହେବ ତାହା ସେମାନଙ୍କୁ ବୁଝାଇବାକୁ ହେବ ନାହିଁ । ସେତେବେଳେ ଅନେକ ଲୋକ ଏକପ୍ରକାର ଉଲଙ୍ଗ ଅବସ୍ଥାରେ ଥିଲେ ଏବଂ ଲୁଗାପାଇଁ ଦଙ୍ଗାହଙ୍ଗାମ ହାଟଲୁଟ ହୋଇଯାଇଛି ଯୁଦ୍ଧ ପୂର୍ବରେ ଯେଉଁ ଦର ଥିଲା, ଯୁଦ୍ଧବେଳେ ଲୁଗାର ସେ ଦର ତିନି ଗୁଣ ବଢ଼ିଗଲା, ଗରିବ ଲୋକେ ଲୁଗା କିଣିପାରିଲେ ନାହିଁ । ଯେତେବେଳେ ଲୁଗା ଖରଚର ବାର୍ଷିକ ପରିମାଣ ଏକଷଷ୍ଠାଂଶ କମିଯାଇଥିଲା ସେତେବେଳେ ଏହି ବ୍ୟାପାର ଘଟିଥିଲା । ଅତଏବ ଯଦି ଅଧେ କମିଯାଏ ବ୍ୟାପାର କି ସାଂଘାତିକ ହେବ ତାହା ବିବେଚକ ଲୋକ ସାଧାରଣ ବୁଝିପାରିବେ ।

ଏହି ପୁସ୍ତିକାର ଉଦ୍ଦେଶ୍ୟ ନୁହେ ଭାରତବର୍ଷରେ ଲୁଗା ପ୍ରସ୍ତୁତ ହେବାର ବ୍ୟବସାୟ ବିରୁଦ୍ଧରେ ପ୍ରଚାର କରିବା, ଅବା ତନ୍ତର ଉତ୍କର୍ଷସାଧନ କରିବା ବିରୁଦ୍ଧ ପ୍ରଚାର କରିବା । ସରକାରଙ୍କର ଏଥିପ୍ରତି ସମ୍ପୂର୍ଣ୍ଣ ସହାନୁଭୂତି ଅଛି ଓ ତନ୍ତ ବ୍ୟବସାୟର ଉନ୍ନତି କରିବା ଡାଇରେକ୍ଟର ଅଫ୍ ଇଣ୍ଡଷ୍ଟ୍ରିଜ୍‌ଙ୍କର ଗୋଟିଏ ପ୍ରଧାନ କାର୍ଯ୍ୟ । ଏଥିପାଇଁ ସୂତା କାଟିବାରେ ଓ ବୁଣିବାରେ ଜଣେ ଦକ୍ଷ ଲୋକଙ୍କୁ ନିଯୁକ୍ତ କରାହୋଇଅଛି ଓ ଦେଶର ନାନା ସ୍ଥାନରେ ଉତ୍କୃଷ୍ଟ ତନ୍ତ ଓ ଅଇଠ ପ୍ରଚଳନର ଶିକ୍ଷା ଦିଆଯାଉଅଛି । ଭାଗଲପୁର ରେଶମର ଲୁଗା ତୟାରପାଇଁ ସ୍କୁଲ ଓ ରାଞ୍ଚିରେ ଲୁଗା ବୁଣିବା ସ୍କୁଲ ସ୍ଥାପନ କରିବାକୁ ଯାଉଛନ୍ତି ।

ଆସନ୍ତା ନଭେମ୍ବର ଓ ଡସେମ୍ବର ମାସରେ ପାଟଣାରେ ସମଗ୍ର ଭାରତବର୍ଷର ହାତବୁଣା ଲୁଗାର ପ୍ରଦର୍ଶନୀ ସରକାର କରାଉଛନ୍ତି, ଯେପରି କି ହାତବୁଣା କାରବାର ଉତ୍ସାହ ପାଏ । ସେଥିପାଇଁ ବର୍ତ୍ତମାନର ଏ ବିଷୟର ଆନ୍ଦୋଳନରେ ସରକାରଙ୍କର ସହାନୁଭୂତି ନାହିଁ ବୋଲି କେହି ଦୋଷ ଦେଇପାରିବେ ନାହିଁ । କେବଳ ବନ୍ଧୁବର୍ଗର ଚେଷ୍ଟାରେ ଯାହା ସମ୍ଭବ ତାକୁ ଅଳ୍ପ ସମୟ ମଧ୍ୟରେ କରିବାକୁ ଯାଇ ଲୋକେ ଯେପରି ବିପଦଗ୍ରସ୍ତ ନ ହୁଅନ୍ତି ତହିଁପାଇଁ ସରକାର ଚିନ୍ତିତ । କାରଣ ସରକାର ଜାଣନ୍ତି ଯେ ଯଦି ହଠାତ୍ ବିଦେଶୀ ଲୁଗା ଲୋକେ ବର୍ଜ୍ଜନ କରନ୍ତି ତାହାହେଲେ ଲୋକସାଧାରଣଙ୍କର କଷ୍ଟ ହେବ, ସେଥିପାଇଁ ସରକାର ଶିକ୍ଷିତ ଲୋକଙ୍କୁ ଅନୁରୋଧ କରନ୍ତି କି ଯେ ସେମାନେ ଯେପରି ଏହି ଅହିତକର କାର୍ଯ୍ୟ ନିଜେ ନ କରନ୍ତି ଏବଂ ତଦ୍ୱାରା ଅନ୍ୟର ମନ୍ଦ ଆଦର୍ଶ ନ ହୁଅନ୍ତି ।



B. & C. G. P. (P. B.) No. 31—10,000—14-9-1921—B. L. B.

# ଫାରମଲୀନ

ଜ୍ୱରଯମ।

ଫାରମଲିନ ଜ୍ୱରର ପ୍ରଧାନ ମହୌଷଧ। କି ଡାକ୍ତରରେ କି କବିରାଜରେ ଏପରି ଔଷଧ ଏଥିପୂର୍ବେ କେବେ ବାହାର ନଥିଲା। ଏକ୍ଲିଅ, ବାତଶ୍ଳେଷ୍ମା ସାନ୍ନିପାତିକ, ପିତ୍ତାଧିକ, ଲୁକସ୍ତ ମେଲେରିଅ, ଇନ୍‌ଫ୍ଲୁଏଞ୍ଜା, ବାଟିକିଙ୍ଗ ପ୍ରଭୃତି ସବୁପ୍ରକାର ନୂଆପୁରୁଣା ଜ୍ୱରରେ ଏହା ଜୟକାରୀ। ଅନ୍ୟାନ୍ୟ ଡାକ୍ତରୀ ଓ କବିରାଜୀ ଔଷଧ ପରି ଫାରମଲିନରେ ରୋଗୀର ପଥ୍ୟାପଥ୍ୟ ବିଚାର କରିବାର ନାହିଁ। ମୂଲ୍ୟ ପ୍ରତିଶିଶି ଟ ୦ ୫ ଅଣା ମାତ୍ର ଡଜନ ଟ ଟ ୫.୦ ୯ ଏଜେଣ୍ଟମାନଙ୍କୁ କମିସନ ଦେଉଥାଉଁ।

ପ୍ରାପ୍ତିସ୍ଥାନ—ଆର୍, ଲେଭିନ୍ ଆଣ୍ଡକୋଂ ନଂ ୧୫୫ ବଳ୍ପୁବଜାରଷ୍ଟ୍ରୀଟ କଲିକତା।

---

# ଲକ୍ଷ୍ମୀ ଭଣ୍ଡାର ପୁରୀ।

ଶ୍ରୀ ପଞ୍ଚମୀ ଠାରୁ

## ଏବର୍ଷର ନୂତନ ଆୟୋଜନ

ଏଥର ବର୍ଷରୁ ନାନା ପ୍ରକାର ଦେଶୀ ଲୁଗା, କାଗଜ କଲମ, ଛୁରି ଛତା; କାଚ ଓ ମୃତ୍ତିକା ଦ୍ରବ୍ୟ ନାନା ମନୋହର ଜିନିସ ସଙ୍ଗେ ଏ ବର୍ଷ ଗୁଡ଼ ଡାଲି ଗହମ, ତେଲ, ଘିଅ, ମସଲା ପ୍ରଭୃତି ବଦେ ଖାଦ୍ୟ ଦ୍ରବ୍ୟର ଦୋକାନ ସ୍ୱଲ୍ପ ମୂଲ୍ୟରେ ଖୋଲା ଅଛି। ମଫସଲରୁ, କଟକରୁ, ଦକ୍ଷିଣରୁ, କଲିକତାରୁ ଆଣିବା, ପଠାଇବା ପତ୍ର ପ୍ରଭୃତି ଅତି ସହଜରେ ଶସ୍ତା ଦରରେ ଯୋଗାଇ ଦେବା କରିଅଛୁ। ଭଣ୍ଡାର ସଙ୍ଗେ କଲିକତାରୁ ଏକ ସୁଶିକ୍ଷିତ କାରିଗର ସୁନା ରୁପା ଅଲଙ୍କାର ପାଲିସ କରିବା ଓ ରଙ୍ଗ ଦେବା କାର୍ଯ୍ୟ ଖୁବ ନିକଟରେ ଖୋଲିବୁ। ପୁରୁଣା ଅଲଙ୍କାର ପାଇଲେ ସୁନ୍ଦର ପାଲିସ ଓ ରଙ୍ଗ କରି ଅଳ୍ପଦିନ ଭିତରେ ନୂତନ କରି ଦେଇପାରୁଁ। ନାନା ପ୍ରକାର ଫଟୋ ଓ ସୁନ୍ଦର ଛବି ଖୁବ ଭଲ ବଡ଼ର ଦେଇ ବାନ୍ଧୁ ଅଛୁଁ। ଯାହାଙ୍କର ଯାହା ଦରକାର, ଜଣାଇଲେ ଯୋଗାଇବୁଁ। ପରୀକ୍ଷା ପ୍ରାର୍ଥନୀୟ। ଓକିଲ, ମୁକ୍ତାର ସ୍କୁଲ କଲେଜର ବନ୍ଧୁମାନେ ପ୍ରଭୃତି ଶିକ୍ଷିତ ବ୍ୟକ୍ତିମାନଙ୍କର ତତ୍ତ୍ୱାବଧାନରେ ପରିଚାଳିତ ଓ ନିମ୍ନ ଲିଖିତ ଭଦ୍ର-ବ୍ୟକ୍ତିମାନେ ଭଣ୍ଡାରର ପୃଷ୍ଠପୋଷକ। ସତ୍ୟତା ଓ ସାଧୁତା ଆମ୍ଭମାନଙ୍କର ମୂଳ ମନ୍ତ୍ର।

ସେକ୍ରେଟେରୀ — ଶ୍ରୀ କୁଳମଣିମହାପାତ୍ର

ଆସିଷ୍ଟାଣ୍ଟ ସେକ୍ରେଟେରୀ — ଶ୍ରୀ ଜଗନ୍ମୋହନ ପ୍ରହରାଜ

ଅଡ଼ିଟର — ଶ୍ରୀ ବାନାମ୍ବର ଶତପଥୀ

ଲକ୍ଷ୍ମୀ ଭଣ୍ଡାର
ପୁରୀ

ହୃଦାନନ୍ଦ ମହାନ୍ତି
ମ୍ୟାନେଜର